# କପିଳେଶ୍ୱର ପ୍ରକୃତ କପିଳବାସ୍ତୁ



ନନ୍ଦସି ଯଜ୍ଞବଧେ ରହହ ଶ୍ରୁତଜାତଂ
ସଦୟ ହୃଦୟ ଦର୍ଶିତ ପଶୁଘାତଂ
କେଶବ ଧୃତ ବୁଦ୍ଧଶରୀର, ଜୟଜଗଦୀଶ ହରେ (ଜୟଦେବ)

## କପିଳେଶ୍ୱରରେ ବୌଦ୍ଧସମାଗମର ପ୍ରଥମ ଅଧିବେଶନରେ ପଠିତ

୩ । ୫ । ୭୦ ରବିବାର

ଲେଖକ:—**ଶ୍ରୀଯୁକ୍ତ ଚକ୍ରଧର ମହାପାତ୍ର**

ହରପୁରରୋଡ଼, କଟକ-୧

ପ୍ରକାଶକ:—**କପିଳେଶ୍ୱର ବୁଦ୍ଧଜୟନ୍ତୀ ସଂସଦ**

ଗ୍ରାମ-କପିଳେଶ୍ୱର

ଭୁବନେଶ୍ୱର-୨

ଜି-ପୁରୀ

**ଅଭ୍ୟର୍ଥନା ସମିତି**

ସଭାପତି—ଶ୍ରୀଯୁକ୍ତ ଭିକାରିଚରଣ ମଳିଆ

ଉପସଭାପତି—ଶ୍ରୀଯୁକ୍ତ ଲକ୍ଷ୍ମୀଧର ମଳିଆ

ସାଧାରଣ ସଂପାଦକ—ଶ୍ରୀଯୁକ୍ତ ନରସିଂହ ମହାପାତ୍ର

ସହକାରୀ ସଂପାଦକ—ଶ୍ରୀଯୁକ୍ତ କପିଳ ମଳିଆ

କୋଷାଧ୍ୟକ୍ଷ—ଶ୍ରୀଯୁକ୍ତ ବଜସୁରାମ ମଳିଆ

ସମୀକ୍ଷକ—ଶ୍ରୀଯୁକ୍ତ ସଦାଶିବ ମହାପାତ୍ର

**କାର୍ଯ୍ୟକାରୀ ସଭ୍ୟବୃନ୍ଦ**

ଶ୍ରୀଯୁକ୍ତ ଅଗାଧୁ ମଳିଆ

,, କୈଳାଶ ଚନ୍ଦ୍ର ମଳିଆ

,, ପୂର୍ଣ୍ଣଚନ୍ଦ୍ର ପଣ୍ଡା

,, ତ୍ରିଲୋଚନ ମଳିଆ

,, ବଳରାମ ମହାପାତ୍ର

,, ପୂର୍ଣ୍ଣଚନ୍ଦ୍ର ମଳିଆ

,, ସାଧୁଚରଣ ହଜାରି

,, ପରୀକ୍ଷିତ ମଳିଆ

,, ଗୋଲଖ ମଳିଆ

# କପିଳେଶ୍ୱର ପ୍ରକୃତ କପିଳବାସ୍ତୁ

ବିଶ୍ୱ ଜଗତରେ ସିଦ୍ଧାନ୍ତ ହେବାକୁ ବିଳମ୍ବ ଥିଲେ ମଧ୍ୟ ଆଜି ବୁଦ୍ଧଙ୍କ ପ୍ରକୃତ ଜନ୍ମସ୍ଥାନରେ ଏ ସଭା ଆୟୋଜିତ ହୋଇଅଛି । ବୁଦ୍ଧଙ୍କ ପ୍ରିୟବନ୍ଧୁ ମାନଙ୍କ ବଂଶଧର ଯେଉଁ ମଲ୍ଲଆ ନାମିତ ଗୋଷ୍ଠୀ କୁଶୀନଗରରୁ ଆସି ଏହି କପିଳେଶ୍ୱର ଜନ ପଦରେ ବୁଦ୍ଧଙ୍କ ପରିନିର୍ବାଣ ପରଠୁ ଅନ୍ୟୂନ ଅଢ଼େଇ ହଜାର ବର୍ଷ ହେଲା ବସବାସ କରି ରହି ଅଛନ୍ତି, ସେମାନେ ତାଙ୍କ ଭଗବତ୍ ବନ୍ଧୁଙ୍କର ଅନ୍ତିମ ନିର୍ଦ୍ଦେଶ ସ୍ମରଣ କରି ଏହି ସମାଗମର ପ୍ରଥମ ଅଧିବେଶନ ଆରମ୍ଭ କରିଛନ୍ତି ।

ଅତୀତକୁ ସ୍ମରଣ କଲେ ଜଣାଯାଏ—ତଥାଗତ ବୁଦ୍ଧ ସ୍ୱର୍ଣ୍ଣକାର ଚୁନ୍ଦଙ୍କ ଗୃହରେ ଭିକ୍ଷା ଗ୍ରହଣ କରି ଯେଉଁ ଶେଷ ଆହାର କଲେ, ତଦ୍ୱାରା ତାଙ୍କର ଅନ୍ତିମ ସମୟ ଆସିବା କଥା ଜାଣି କୁଶୀ ନଗରର ଦୁଇଟି ଶାଳ ବୃକ୍ଷର କୋଡ଼ରେ ଶୋଇ ରହି କହିଥିଲେ—

"ହେ ଆନନ୍ଦ ! ମୁଁ ଚାଲିଯିବାପରେ ତୁମ୍ଭେମାନେ ସମାଗମ ଓ ଆଳାପ ଲାଗି ମୋର ଚାରିଗୋଟି ସ୍ଥାନକୁ ସ୍ୱୀକାର କରିବ । ପ୍ରଥମ ଆଗତ ଜନ୍ମସ୍ଥାନ କପିଳବାସ୍ତୁ । ଦ୍ୱିତୀୟ ତାର ସମ୍ବୋଧି ସ୍ଥାନ ଉରୁବେଲା ଅରଣ୍ୟ । ତୃତୀୟ ଧର୍ମଚକ୍ର ପ୍ରବର୍ତ୍ତନ ଭୂମି ବାରାଣସୀର ମୃଗଦାବ ବନ ଚତୁର୍ଥ ତାର ପରିନିର୍ବାଣ ସ୍ଥାନ ଏହି କୁଶୀ ନଗର । ଏ ସବୁ ସ୍ଥାନରେ ଶ୍ରଦ୍ଧାବାନ୍ ଭିକ୍ଷୁ ଭିକ୍ଷୁଣୀମାନେ ଆଗତଙ୍କୁ ସ୍ମରଣ କରିବେ ।

"ହେ ଆନନ୍ଦ ! ତୁମେ କୁଶୀ ନଗରକୁ ଯାଅ । ମୋର ପ୍ରିୟ ବସବାସୀ ମଲ୍ଲଆମାନଙ୍କୁ ଖବର ଦିଅ ଓ କହ । ହେ ମୋର ପ୍ରିୟ ବନ୍ଧୁଗଣ ! ଆଜି ରାତ୍ରି ଶେଷ ପ୍ରହରରେ ତଥାଗତ ପରିନିର୍ବାଣ ଲାଭ କରିବେ । ତୁମ୍ଭେମାନେ ପ୍ରସନ୍ନତା ପୂର୍ବକ ଆସ । ପଛନ୍ତେ କହିବ ନାହିଁ ଯେ, ତଥାଗତ ଆମ ନିଜ ଭୂଇଁରେ ପରିନିର୍ବାଣ ହେଲେ, ଆମେ ଠିକେ ଜାଣି ପାରିଲୁ ନାହିଁ ।"

ଏ ବାର୍ତ୍ତା ଶୁଣନ୍ତେ ମଲ୍ଲଆମାନେ ଏକ ଦେବାଳୟରେ ଜନ୍ତାଳ କରୁଥିଲେହେଁ ତାହା ତ୍ୟାଗକରି ଯୁବକ ଯୁବତୀ ବଧୂକନ୍ୟା ନିର୍ବିଶେଷରେ ସହସ୍ର ସଂଖ୍ୟାରେ ଆସି ତଥାଗତଙ୍କର ପଦ-ବନ୍ଦନା କରି ଚାଲିଲେ । ପରିନିର୍ବାଣ ଶେଷରେ ସେମାନେ ପୁଷ୍ପବୃଷ୍ଟି କରି ନାନା ବାଦ୍ୟ ବଜାଇ ମହାସମାରୋହରେ ରାଜଚକ୍ରବର୍ତ୍ତୀ ସମ୍ମାନରେ ତାଙ୍କୁ ଦାହ କଲେ । ଚିତାରୁ ଅରକ୍ଷେମ ବାମ କାଲରେ ଥିବା ଦନ୍ତଟିକୁ ନେଇ କଳିଙ୍ଗ ଚାଲିଲେ । ଏବଂ ତାହା କଳିଙ୍ଗ ସମ୍ରାଟ ବ୍ରହ୍ମଦତ୍ତଙ୍କୁ ଅର୍ପଣ କଲେ । ମଲ୍ଲଆମାନେ ସୁପବିତ୍ର ଅସ୍ଥି ଏବଂ ଚିତା ଭସ୍ମ ସହିତ ଆସି କପିଳବାସ୍ତୁରେ ସ୍ତୂପ ମଧ୍ୟରେ ରଖି ତଥାଗତଙ୍କର ଅନ୍ତିମ ନିର୍ଦ୍ଦେଶ ମାନି ତହିଁର ପୂଜକ ହୋଇ ରହିଲେ । ସେମାନେ ପୂର୍ବେ ଯେପରି ବ୍ରାହ୍ମଣ୍ୟ ଧର୍ମରେ ଥିଲେ, ସେପରି ଚିରକାଳ ରହିଅଛନ୍ତି । ତାଙ୍କ ପ୍ରତିଷ୍ଠିତ ଶିବଙ୍କୁ ଦ୍ୱିତୀୟ କପିଳେଶ୍ୱର କହନ୍ତି ।

ଧର୍ମ ବିପ୍ଳବରେ ବୁଦ୍ଧଙ୍କ ପୁଣ୍ୟ ଜନ୍ମପୀଠର ମୂର୍ତ୍ତି ଏକାବେଳେ ଧ୍ୱସ୍ତ ବିଧ୍ୱସ୍ତ କରି ଦିଆଯିବା ପରେ ମଲ୍ଲଆମାନେ କେବଳ ନିଜ ଗୋଷ୍ଠି ଧରି ଶୁଦ୍ଧୋଦନଙ୍କ ଉପାସ୍ୟ ଆଦ୍ୟ ଦେବତା ପ୍ରଥମ କପିଳେଶ୍ୱରଙ୍କ ସହିତେ ତାଙ୍କ ପ୍ରତିଷ୍ଠିତ ଅର୍ଘ୍ୟ ଏବଂ ସ୍ତୁପପ୍ରତିବିମ୍ବରେ ଅସ୍ଥି କପିଳେଶ୍ୱର ସେକି ପରେ ସ୍ଥାପିତ ହେଲେ ତାଙ୍କ ସେବା ପୂଜାକରି ବଞ୍ଚିରହିଲେ । ତାଙ୍କ ପ୍ରିୟ ବନ୍ଧୁ ତଥାଗତଙ୍କୁ ଭୁଲିଯିବାକୁ ବାଧ୍ୟ ହେଲେ । ବୁଦ୍ଧଙ୍କ ନିର୍ଦ୍ଦିଷ୍ଟ ସମାଗମ ହୋଇ ପାରିନଥିଲା । ଏବେ ଜାଣି ସେ ସମାଗମ ଓ ଆଳାପର ଅଧିବାସ ଉତ୍ସବ ଗତ ୧୯ । ୪ । ୭୦ ରବିବାର ଦିବା ୧୧ ଘଣ୍ଟାରେ କପିଳେଶ୍ୱର କ୍ଲବରେ ହୋଇଯାଇଛି । ଆଜିର ଏ ଉତ୍ସବ ସେ ସମାଗମ ଓ ଆଳାପର ପ୍ରଥମ ଅଧିବେଶନ ଆଜି ନହେଲେହେଁ ଏହାର ଗୁରୁତ୍ୱ ଇତିହାସ ଦିନେ ନିଶ୍ଚିତ ସ୍ୱୀକାର କରିବାକୁ ବାଧ୍ୟହେବ ।

କପିଳେଶ୍ୱର ବ୍ୟତୀତ ମଲ୍ଲଆ ଜାତିର ବ୍ୟକ୍ତି ବା ପରିବାର ଉତ୍କଳରେ ଆଉ କେଉଁଠି ହେଲେ ନାହାଁନ୍ତି । ଉତ୍ତର ପ୍ରଦେଶରେ କ୍ୱଚିତ୍ ଦେଖାଯାନ୍ତି । ପାଞ୍ଚଶତ ଘର ଗୋଷ୍ଠି ଧରି ଓ ପୁଣ୍ୟବନ୍ତ ମଲ୍ଲଆମାନେ ନିଜ ରକ୍ତର ବିଶୁଦ୍ଧତା ରଖି ଅନ୍ତର୍ନିବାହୀ ଭାବରେ ସ୍ୱତନ୍ତ୍ରପରି ଏଠାରେ ବିରାଜିତ ରହିଅଛନ୍ତି । ସେମାନଙ୍କ ସହିତ ବହୁଘାତ ପ୍ରତିଘାତ ସହି କପିଳେଶ୍ୱର ଜନପଦ ଯାହା ଦିନେ କପିଳବାସ୍ତୁ ଅଭିଧାରେ ଅଭିହିତ ଥିଲା ସେ ଅଛି ଏବଂ ବହୁ ସୁପ୍ରାଚୀନ ସେକାଳର ପ୍ରଜା ବଂଶଧର ମଧ୍ୟ ରହି ଅଛନ୍ତି । ପୁନଶ୍ଚ ଶୁଦ୍ଧୋଦନଙ୍କ ପୂଜିତ ଦେବତା ମାନଙ୍କ ମଧ୍ୟରେ ପ୍ରଥମ କପିଳେଶ୍ୱର ମଧ୍ୟ ପୂର୍ବପରି ରହି ଅଛନ୍ତି ଏବଂ ତତ୍ପାର୍ଶ୍ୱରେ କ୍ଷୁଦ୍ର ବୌଦ୍ଧ ସ୍ତୁପଟିଏ ମଧ୍ୟ ବିରାଜିତ ଅଛି ।

ଏହି ଜନପଦରୁ ଖ୍ରୀଷ୍ଟପୂର୍ବ ଶତକର ନାଗ ମୂର୍ତ୍ତିମାନ ଆବିଷ୍କୃତ ହୋଇଅଛି । ତେଣୁ ଏହାର ପ୍ରାଚୀନତା ନିଃସନ୍ଦେହ ବୋଲି ଐତିହାସିକ ମାନଙ୍କ ମତ । ଏଠାରେ ଯେଉଁ ସ୍ତୁପଟି ଥିଲା ତାର ବାଡ଼ର ନିମ୍ନସ୍ଥ ପଟ୍ଟଲୀ ବା କର୍ଣ୍ଣିର ପୋଷ୍ଟ ଅଫ୍ ରେଲିଂର୍ କେତେକାଂଶ ପ୍ରଫେସର ରାଧାକୁମୁଦ ମୁଖାର୍ଜୀ ୧୯୨୭ରେ ପାଇଥିଲେ । କେତେକ କେତକେ ଆଶୁତୋଷମିଉଜିୟମରେ ବୀରେନ୍ଦ୍ର ନାଥ ରାୟଙ୍କ ସଂଗ୍ରହର୍ ଯାଇ ରହିଛି ଏବଂ କେତେକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସଂଗ୍ରହକରି ଓଡ଼ିଶା ମିଉଜିୟମ୍‌କୁ ଦେଇଛନ୍ତି । ଏ ଅଞ୍ଚଳରେ ସ୍ତୁପଥିବା କଥା ବହୁ ଐତିହାସିକ ପ୍ରମାଣ କରିଥିବା ପେନ ଡକ୍ଟର ନବୀନକୁମାର ସାହୁ ତାଙ୍କ ପ୍ରଣିତ ବୁଦ୍ଧିଜିମ୍ ଇନ୍ ଓଡ଼ିଶାରେ ଲେଖି ଅଛନ୍ତି ।

ଏହି କପିଳେଶ୍ୱର ମନ୍ଦିର ମଧ୍ୟରେ ପୂଜିତ ଅସ୍ଥି ଚିତାଭସ୍ମ ରକ୍ଷିତ ସ୍ତୁପଟି ନିଶ୍ଚିତ ରହିଥିଲା । ତେଣୁ ତହିଁର ଭଗ୍ନଶିଳାସ୍ତମ୍ଭ ମାଧ୍ୟମରେ ବୁଦ୍ଧ । ପ୍ରଜ୍ଞାପାରମିତା ଏବଂ ପଦ୍ମପାଣି ମୂର୍ତ୍ତି ଏଠାରେ ଅଦ୍ୟାପି ଦୃଷ୍ଟି ଗୋଚର ହୋଇଥାନ୍ତି । ଗୋଟିଏ ଚିକ୍କଣ କଳା ମୁଗୁନି ପଥରର ବୃହତ୍-ଖଣ୍ଡିତାଂଶ-ଯାହା ମନ୍ଦିର ବିକେଷ୍ଟଲୀ ମଧ୍ୟରେ ଅଛି । ତାକୁ ସେବକ ମାନେ ପରମ୍ପରା ଧରି ବୁଦ୍ଧ ପଥରର ଯେ କହି ଆସୁଛନ୍ତି ସେ ସମ୍ବନ୍ଧରେ ସମୀକ୍ଷା ହୋଇନାହିଁ ।

କପିଳେଶ୍ୱର କେବଳ ନୁହେଁ ଖଣ୍ଡଗିରି ଉଦୟଗିରି ଧଉଳିଗିରି ଧରି ସମଗ୍ର ଭୁବନେଶ୍ୱର ଯେ ଏକ ବୌଦ୍ଧ ଅଞ୍ଚଳ ଏହା ଐତିହାସିକ ମାନେ ପ୍ରମାଣ କରି ସାରିଛନ୍ତି । କିଛିବର୍ଷ ପୂର୍ବେ

ଭୁବନେଶ୍ୱର ଷ୍ଟେସନକୁ ଯେ ବୁଦ୍ଧେଶ୍ୱର କୁହାଯାଉଥିଲା ଏବଂ ତତ୍ ସନ୍ନିକଟସ୍ଥ ଏକ ବୌଦ୍ଧ ଧର୍ମର ମୂର୍ତ୍ତିକୁ ଅତି ନିକଟରେ ଲୋକେ ବୁଦ୍ଧେଶ୍ୱରୀ ନାମରେ ଅଭିହିତ କରିଛନ୍ତି, ସେ ସମ୍ବନ୍ଧରେ ଅଦ୍ୟାପି ସମୀକ୍ଷା କରାଯାଇପାରିନାହିଁ । ଘଟଣା ଚକ୍ରରେ, କପିଳେଶ୍ୱର ଠାରୁ କିଛି ଦୂରସ୍ଥ ଲେମ୍ବାଇ ପ୍ରଗଣାର ବିଭିନ୍ନ ବୁଦ୍ଧମୂର୍ତ୍ତି ଗୁଡ଼ିକ ଏଯାଏ ଆମ୍ଭେମାନେ ଦୃଷ୍ଟି ପଥକୁ ନେଇ ନାହୁଁ ।

ଏହି ମନ୍ଦିର ପରିସର ସହିତ ବିସ୍ତୀର୍ଣ୍ଣ ସମତଳ ଭୂମି ଅଂଶ ଯାହା ଶୁଦ୍ଧୋଦନଙ୍କ ଉଆସ ଥିବା ସ୍ମୃତି କଳ୍ପନାରେ ଜାଗ୍ରତ କରାଏ, ସେଠି ବୌଦ୍ଧ ଯୁଗର 'ଦହ' ବା (ଜଳାଶୟ) ଟିଏ ଥିବାର ଦେଖାଯାଏ ।

ବଡ଼ କଥା ହେଲା ଏଇ କପିଳେଶ୍ୱର ମନ୍ଦିର ସନ୍ନିକଟରୁ ୧୯୨୮ ରେ ଅଶୋକଙ୍କର ଏକ ଶିଳାଲିପି ଆବିଷ୍କୃତ ହୋଇଛି ଯହିଁରେ ଲେଖାଅଛି ବୁଦ୍ଧ ଏଠାରେ ଜନ୍ମଗ୍ରହଣ କରିଥିବାରୁ ତାଙ୍କ ଜନ୍ମଭୂମି ଲୁମ୍ବିନୀର କର ଛାଡ଼ କରାଗଲା । ସେଥିରେ ଲିପି ଲେଖକର ନାମ ଖରୋଷ୍ଟି ଲିପିରେ, ମୂଳ ଲେଖାଟି ପୁରାତନ ବ୍ରାହ୍ମୀ ଅକ୍ଷରରେ ଲେଖାଯାଇ ବୁଦ୍ଧଙ୍କ ପରିନିର୍ବାଣ ଅବ୍ଦ ୨୪୦ ରଖାଯାଇଛି ।

ଆଜି ଯେ ବିଶ୍ୱଜଗତରେ ନେପାଳର ତରାଇ ଅରଣ୍ୟ ବୁଦ୍ଧଙ୍କ ଜନ୍ମସ୍ଥାନ ବୋଲି ପ୍ରଚାରିତ ହୋଇପଡ଼ିଛି । ସେଠାରୁ ଏହିପରି ଏକ ଲିପି ୧୮୯୬ ରେ ଜର୍ମାନ୍ ପ୍ରତ୍ନତତ୍ତ୍ୱବିଦ୍ ଡକ୍ଟର ଫୁର୍ର ଆବିଷ୍କାର କରିଥିଲେ । ତାର ୩୨ ବର୍ଷ ବ୍ୟବଧାନରେ ଏ ଲିପିଟି ଯେତେବେଳେ ମିଳିଲା ତାହା ଉପରେ ବିଶ୍ୱବାସୀ ଗବେଷଣା କରିଥିଲେ ବା ଓଡ଼ିଶାରେ ଚର୍ଚ୍ଚା ହୋଇଥିଲେ କେଉଁଟି ମୂଳ କେଉଁଟି ପ୍ରକ୍ଷେପ ତାହା ଜଣା ପଡ଼ିଯାଇଥାନ୍ତା । ୧୯୨୬ ରେ ଉତ୍କଳ ବରେଣ୍ୟ ପଞ୍ଚସଖା ମଧ୍ୟରୁ ଅନ୍ୟତମ ପଣ୍ଡିତ କୃପାସିନ୍ଧୁ ସ୍ୱର୍ଗବାସୀ ହୋଇଥିଲେ । ଏଠା ଲିପି ପ୍ରକଟିତ ହେଲା ୧୯୨୮ ରେ । ଲିପିଟି ଯେଉଁଠି ମିଳିଲା ଏ ମଧ୍ୟରେ ସେଠାରେ ପ୍ରାସାଦ ସବୁ ନିର୍ମାଣ ହୋଇଗଲା । ତେଣୁ ମୂଳଶିଳାକୁ ମିଳିବା ଦୁଃସାଧ୍ୟ ହେଲେହେଁ କଥା ଐତିହାସିକ ରଚନାରେ ବଞ୍ଚି ରହିଛି । ଏ ଲିପିଟି ଯେଉଁ ସ୍ତମ୍ଭରେ ଥିଲା ତାହା ଧର୍ମ ବିପ୍ଲବରେ ଭାଙ୍ଗି ଗୁଣ୍ଡ କରି ଦିଆଯାଇଛି । ତଥାପି ଗଡ଼େ ରହିଛି । ୯୦ ବର୍ଷ ପୂର୍ବେ ଶ୍ରୀ ରାଜେନ୍ଦ୍ର ଲାଲ ମିତ୍ର ତାଙ୍କ ପ୍ରଣିତ ଆଣ୍ଟିକ୍ୟୁଟିକ୍ ଅଫ୍ ଓଡ଼ିଶା ବହିର ୨ୟ ଖଣ୍ଡ ପୃ ୮୯ ରେ ଭୁବନେଶ୍ୱରସ୍ଥ ଭାସ୍କରେଶ୍ୱର ଶିବ ଲିଙ୍ଗଟି ଅଶୋକସ୍ତମ୍ଭ ବୋଲି ସିଦ୍ଧାନ୍ତ କରିଥିଲେ । ସେତେବେଳେ ଓଡ଼ିଶାର ଏ ଅଞ୍ଚଳ ବୌଦ୍ଧ କ୍ଷେତ୍ର ଥିବାର ଧାରଣା ଅଣାଯାଇ ପାରିନଥିଲା । ତେଣୁ ଶ୍ରୀ ମନମୋହନ ଗାଙ୍ଗୁଲି ତାଙ୍କ ପ୍ରଣିତ ଓଡ଼ିଶା ଆଣ୍ଡ ହରରିମେନସ ବହିର ପୃ ୩୨୪ ରେ ୬୦ବର୍ଷ ତଳେ ଲେଖିଲେ ଏଠି ବୌଦ୍ଧାଞ୍ଚଳର ସୂଚନା ନଥିଲେ ମଧ୍ୟ ଏହା କଦାପି ଲିଙ୍ଗନୁହେଁ । ଏହା ନିଶ୍ଚିତ ଅଶୋକସ୍ତମ୍ଭର ଏକାଂଶ । ଏହାର ଉଚ୍ଚତା ୯ ଫୁଟ୍ । ଗୋଲେଇ ଫୁ୨।୧ ଇଞ୍ଚ ବ୍ୟାସ ଫୁ ୩।୧୦ ଇଞ୍ଚ ଏହା ସମ୍ପୂର୍ଣ୍ଣ ସ୍ତମ୍ଭ ୩୫ ଫୁଟରରୁ ଚଉଠେ ହେବ । ଶ୍ରୀ ବି: ଏମ୍: ବରୁଆ ତାଙ୍କ ବୁଦ୍ଧ-ଅଶୋକ ଆଣ୍ଡ ହିଜ୍ ଇନ୍‌ସକ୍ରିପ୍‌ସନ୍ସ ୨ୟ ଭାଗ ପୃ ୩ ରେ ଏହା ନିଶ୍ଚିତ ଅଶୋକସ୍ତମ୍ଭ ବୋଲି ଲେଖିଛନ୍ତି । ଏପରିକି ନାନା ତର୍କକୁ ଅପ୍ରମାଣିତ କରି ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏ ଲିଙ୍ଗଟି କଳିଙ୍ଗର ଏକ ଅଶୋକସ୍ତମ୍ଭ ବୋଲି ଜର୍ଣ୍ଣାଲ ଅଫ୍ ଏସିଆଟିକ ସୋସାଇଟି ୧୭ ନମ୍ବର ପୃ ୯୮ ରେ ପ୍ରମାଣିତ କରିଅଛନ୍ତି ।

ଏ ସ୍ତମ୍ଭର ବେଲ୍ କାପିଟାଲ ବା ଘଣ୍ଟାକୃତି ଆମଳକଟି ରାମେଶ୍ୱର ମନ୍ଦିର ପାଖରୁ ମିଳିଛି । ଏବେ ତା ଓଡ଼ିଶା ମିଉଜିୟମ ଅଗଣାରେ ପଡ଼ିଛି । ଏପରିକି ସିଂହଟି ମଧ୍ୟ ଏକ ପଥର

**ଘେର ଥିବା ପୋତା ମାଟି ଭିତରୁ ଉଦ୍ଧାର କରି ଉକ୍ତ ମିଉଜିୟମକୁ ନିଆଯାଇଛି । ଏଥିରେ ବ୍ରାହ୍ମୀ ଅକ୍ଷରର ସଙ୍କେତ ରହିଛି ।**

କପିଳେଶ୍ୱର ଶିଳାଲିପିଟିକୁ ବୀରେନ୍ଦ୍ର ନାଥ ରାୟ ନାମକ ଜଣେ କଣ୍ଟ୍ରାକ୍ଟର ନାନା ପ୍ରାଚୀନ ପ୍ରତ୍ନ ତତ୍ତ୍ୱ ସାମଗ୍ରୀ ସହିତ ନେଇ ପୁରୀରେ ଗୋଟିଏ ମିଉଜିୟମ କରି ରଖିଥିଲେ । କଲିକତା ବିଶ୍ୱବିଦ୍ୟାଳୟର ହାରାଣଚନ୍ଦ୍ର ଚକଲଦାର ତାହା ଦେଖି ପାରି ସେ ସମ୍ପର୍କରେ ଏକ ପ୍ରବନ୍ଧ ବଙ୍ଗଳା ମାସିକ ପ୍ରବାସୀରେ ୧୯୨୮ ଜୁଲାଇ ସଂଖ୍ୟାରେ ଲେଖିଥିଲେ । ତାହାଜାଣି ଶ୍ରୀ ଭଗବାନ ପତି ୨୪ । ୮ । ୨୮ ଦୈନିକ ଆଶାରେ ଉକ୍ତ ସମ୍ବାଦଟି ଉତ୍କଳରେ ବିଦିତ କରିଥିଲେ । ଏହି ଲିପିଟିକୁ ଭଲକରି ପରୀକ୍ଷାନକରି ଐତିହାସିକ ଶ୍ରୀ ରମା ପ୍ରସାଦ ଚନ୍ଦ୍ର ଅକ୍ଷରର ଆକୃତି, ଦୁଇଟି ଲିପି ସମ୍ଭବ ନୁହେଁ ଏପରି କିଛି ଅବାନ୍ତର ପ୍ରମାଣ ଥୋଇ ଉକ୍ତବର୍ଷର ଅଗଷ୍ଟ ସଂଖ୍ୟା ପ୍ରବାସୀରେ ଏଟି ଜାଲ ବୋଲି ମତ ଦେଲେ । ଅକ୍ଷର ସମ୍ବନ୍ଧ ଯେ ଦାକ୍ଷିଣାତ୍ୟର ଏବଂ କଳିଙ୍ଗର ଲିପି ସହିତ ତୁଳନା କରିବାର କଥା, ସେ ତା' ନକରି, ଲିପିଲେଖକ ଚନ୍ଦ୍ରାୟ ସମ୍ପର୍କରେ ଓ ସେଥିରେ ଥିବା ଅଇଁଟି ବିଷୟ ବିସ୍ତୃତକୁ ନନେଇ ଏକ ତରଫା ରାୟ ଦେଇଦେଲେ । ଏ ଆଲୋଚନାଟି ବଙ୍ଗଳାରେ କରାଯାଇ ବଂଗ ପ୍ରଦେଶରେ ଆବଦ୍ଧ ରହିଲେହେଁ ୧୯୨୯ ମସିହାରେ କଲିକତାର ଦ ଇଣ୍ଡିଆନ୍ ହିଷ୍ଟୋରିକାଲ କ୍ୱାଟର୍ଲି ୫ମ ଭାଗରେ ଏ ଲିପିର ଫଟୋ ଛାପାଇ ଶ୍ରୀ ଏସ୍ ଏନ୍ ମିତ୍ର ୧୯ ପୃଷ୍ଠାର ପ୍ରବନ୍ଧଟିଏ ଲେଖି ଚନ୍ଦଙ୍କ ମତ ସମ୍ପୂର୍ଣ୍ଣ ଖଣ୍ଡନ କଲେ । ସେ ତାଙ୍କ ପ୍ରବନ୍ଧ ଦ ଲୁମ୍ବିନୀ ପିଲଗ୍ରିମେଜ୍ ରେକର୍ଡ ଇନ୍ ଟୁ ଇନ୍‌ସକ୍ରିପସନ୍‌ସ (ପୃ ୭୩୯ ଷ୍ଟା ) ରେ ଲେଖିଲେ—

ଯେତେପ୍ରକାର ଏହି କପିଳେଶ୍ୱର ଶିଳାଲିପିକୁ ବର୍ଣ୍ଣ ଅଶୁଦ୍ଧି ଲିପିକାର ଲିଖନ ତ୍ରୁଟି ଏବଂ ଦୁଇଟି ଲିପି ରହିବା ଅସଂଭବ ଦର୍ଶାଇ ଯୁକ୍ତି କଲେହେଁ ଶ୍ରୀଚନ୍ଦ ଆଖିଦୃଷ୍ଟି ଆଭାବେ ଏହା ଅପ୍ରମାଣିତ କରିପାରି ନାହାନ୍ତି । ଏ ସମ୍ବନ୍ଧରେ ଆଉ ତର୍କ ଉଠିଲା ନାହିଁ । ସଂଭବ ପ୍ରତିବାଦଟିର ମୁଲାହିଜାରେ ଅସୁବିଧା ଥିବାରୁ ମୌନତା ଆସିଗଲା ! ଏହା ବୋଲି ପୂର୍ବ ସିଦ୍ଧାନ୍ତରେ କେହି ହସ୍ତକ୍ଷେପ କଲେନାହିଁ କି ଏହି ଫଳକ ନେଇ କେହି ସରଜମିନକୁ ଆସିଲେ ନାହିଁ । ଫଳକଟି ୨୯୩୯ ରେ ବୀରେନ୍ଦ୍ର ନାଥ ରାୟ ମିଉଜିୟମ ସହିତ କଲିକତା ଆଶୁତୋଷ ମିଉଜିୟମକୁ ବିକ୍ରିୟ କରିଦେଲେ । ଏହି ହିଷ୍ଟୋରିକାଲ କ୍ୱାର୍ଟର୍ଲି ମଧ୍ୟ ଅଜ୍ଞାତସାରରେ ରହିଗଲା । ଫଳରେ ଲିପିର ସ୍ୱରୂପ ମଧ୍ୟ କାହା ଦୃଷ୍ଟିକୁ ଆସି ନଥିଲା । ଏବେ ୧୯୬୫ ରେ ଉତ୍କଳ ବିଶ୍ୱବିଦ୍ୟାଳୟ-ସକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷର ୪ର୍ଥ ଖଣ୍ଡରେ ତାହା ଜାଣି ପ୍ରକଟିତ କଲେ ।

ଯେଉଁ ତରାଇ ସ୍ତଂଭ ଲେଖାଟି ଯୋଗୁଁ ହିମାଳୟର ଏକ ଅଗମ୍ୟ ଅରଣ୍ୟ ବୁଦ୍ଧଙ୍କ ଜନ୍ମସ୍ଥାନ ଭାବେ ବିଦିତ ହୋଇଅଛି ସେ ଲିପିରେ ଲେଖକ ନାମ ନଥିବା ଏବଂ ଅବ୍ଦ ନଥିବାରୁ ତତ୍‌ପ୍ରତି ସନ୍ଦେହ ଆସିବା ସ୍ୱାଭାବିକ । ପୁନଶ୍ଚ ସ୍ତଂଭଟି ମଧ୍ୟ ଅଶୋକଙ୍କ ନିର୍ମିତ ସ୍ତଂଭର ଉଚ୍ଚତା ଏବଂ ଖୋଦନଶୀଳତାରେ ସନ୍ଦେହ ଆସୁଛି କାରଣ ତାହା ୩୫ ଫୁଟୁ ସ୍ଥଳେ ୨୧ ଫୁଟ ଉଚ୍ଚ । ତା ଛଡ଼ା ସେଥିରେ ବେଲ କାପିଟାଲ ନାହିଁକି, ସିଂହ ମଧ୍ୟ ନାହିଁ । ପୁନଶ୍ଚ ଯେଉଁ ଡକ୍ଟର ଫୁର୍ ସ୍ତଂଭଟି ଆବିଷ୍କାର କଲେ ସେ 'ରୁମିଣ୍ଡେଇ' ଜାଲ ନାମଟି ଦେଇଥିବା ଅତି ସନ୍ଦେହ ଜନକ ହୋଇଛି । ତେଣୁ ଡକ୍ଟର ସ୍ମିଥ୍ ତାଙ୍କର ଏଭ୍ରି ଓ୍ୱାର୍ଡ଼ ଇଜ୍ ଫଲ୍‌ସ, ଇମ୍ପୋର୍ଡେଣ୍ଟ ଫର୍ଜରିକ୍ ବୋଲି

ଲେଖିଛନ୍ତି (ପୃ ୧୮ ଷ୍ଟା ଏଡ଼ୱାର୍ଡ, ଜେ ଟମାସଙ୍କ ରଚିତ ଲାଇଫ୍ ଅଫ୍ ବୁଦ୍ଧ ) । ଏପରିକି ଆର, ଆର, ଦିବାକରଙ୍କ ଭବନସ ବୁକ୍ ଇଉନିଭରସିଟି ୧୯୬୦ ପ୍ରକାଶିତ 'ଭଗବାନ ବୁଦ୍ଧ ପୃ ୨୪ଷ୍ଟାରେ ଅଛି—ଏ ସ୍ତମ୍ଭ ପରିସରର ବହୁ ଅଂଶ ଅଶୋକଙ୍କ ସମୟର ନୁହେଁ । ଧର୍ମ କ୍ଷେତ୍ର କରିନେବା ଯୋଗୁଁ ଏହା ସମ୍ଭବ ହୋଇଛି ।'

କପିଳେଶ୍ୱର ଲିପିଟି ଯେତେବେଳେ ମିଳିନଥିଲା ବା ତାହା ବିଶ୍ୱଜଗତର ଗୋଚରୀଭୂତ ନହେଲା, ସେତେବେଳେ ତରାଇ ଲିପିକୁ ମୂଳକରି ପ୍ରମାଣ ମିଳୁ ନମିଳୁ ତ୍ରିପିଟକ ବର୍ଣ୍ଣନା ସହିତ ଖାପ ଖାଉ ନଖାଉ କୌଣସି ପ୍ରକାରେ ତାହା ବୁଦ୍ଧଙ୍କ ଜନ୍ମସ୍ଥାନ ନିର୍ଦ୍ଧାରିତ ହେବା ଯୋଗୁଁ ନାନା ଯୁକ୍ତି ବଳରେ, ନଦ ନଦୀ ଗ୍ରାମ ନଗର ପର୍ବତାଦିକୁ ସିଦ୍ଧାନ୍ତ କରି, ଗ୍ରନ୍ଥ ପଠନରେ ବିଭ୍ରାନ୍ତ ଓ କଳ୍ପିତ ନାମ କରଣରେ ଯେ, ରାଶି ରାଶି ଗ୍ରନ୍ଥ ଲେଖାଗଲାଣି—ଲେଖାଗଲାଣି ତା ହେବା ସ୍ୱାଭାବିକ । ଆଉକଣ କରାଯାନ୍ତା । କନିଂହାମ ତାଙ୍କ ପ୍ରଣିତ ଆନସିଏଣ୍ଟ ଜୋଗ୍ରାଫି ଅଫ୍ ଇଣ୍ଡିଆ ପୃ୩୪୧ଷ୍ଟାରେ ଲେଖିଯାଇଛନ୍ତି—'ଏଠାରେ କପିଳ ନାମ ସୂଚ୍ଚା ନାହିଁ ।' କିନ୍ତୁ ସ୍ତମ୍ଭ ଆବିଷ୍କାର ଯୋଗୁ ଏଇ ୩୦ ବର୍ଷ ମଧ୍ୟରେ କପିଳବାସ୍ତୁ, କପିଳବାସ୍ତୁ କଳା ବାଧହୋଇ ସୃଷ୍ଟି କରାଯାଇଛି । ଅଥଚ ଏଣେ କପିଳବାସ୍ତୁ କପିଳେଶ୍ୱର ଅପଭ୍ରଂଶରେ ଏବଂ ଲୁମ୍ବିନୀ ଲେମ୍ବାଇ ଅପଭ୍ରଂଶରେ ସମ୍ପୂର୍ଣ୍ଣ ବିରାଜିତ ରହିଛି । ଈଶ୍ୱରେଚ୍ଛା ବଳୀୟସୀ ।

ସେହି ତରାଇ ଜାଗାଟିକୁ ବହୁ ପାଶ୍ଚାତ୍ୟ ଐତିହାସିକ ଏଯାଏ ସନ୍ଦେହ କରିଆସିଛନ୍ତି ଯେ ବୁଦ୍ଧ ସ୍ୱୟଂ କହିଛନ୍ତି—ସେ ଭାରତର ମଝିମ ଦେଶରେ ଜନ୍ମିଥିଲେ । ହିମାଳୟ ସୀମା ମନୁଙ୍କ ନିର୍ଦ୍ଦେଶିତ ମଧ୍ୟଦେଶ ହେବ କପରି ?

କପିଳେଶ୍ୱର ଶିଳାଲିପି ସପକ୍ଷରେ ବହୁ ଐତିହାସିକ, ଭୌଗୋଳିକ, ସାମାଜିକ ପ୍ରମାଣ ଏତେ ବଳବତ୍ତର ଯେ ତାହା କଦାପି ତରାଇ ସ୍ତମ୍ଭ ସପକ୍ଷରେ ଯାଉନାହିଁ

୧—ଅଶୋକ କଳିଙ୍ଗରେ ଯୁଦ୍ଧ କଲେ । ଏଇଠି ବୌଦ୍ଧଧର୍ମ ଗ୍ରହଣ କରି ରାଜଧାନୀକୁ ଗଲେ । ସେ ତାଙ୍କ ଅନୁଶାସନରେ ଲେଖିଛନ୍ତି ୩।୪ ବର୍ଷ ଯାଏ ସେ ବୌଦ୍ଧଧର୍ମର ମର୍ମ ବୁଝି ନଥିଲେ । ୪ର୍ଥ ୫ମ ବର୍ଷରେ ଅନୁଶାସନ ସ୍ଥାପନ କଲେ । କିନ୍ତୁ ଯୁଦ୍ଧର ୧୨ ବର୍ଷ ଯାଏ ବୁଦ୍ଧଙ୍କ ଜନ୍ମସ୍ଥାନକୁ ଆସି ନାହାନ୍ତି । ୧୨ ବର୍ଷ ପରେ ଆସିଲେ । ପୂଜା କଲେ ! ବୁଦ୍ଧଙ୍କ ଜନ୍ମଭୂମିର ଖଜଣା ଛାଡ଼ କଲେ । ଯେବେ ତରାଇ ଅଞ୍ଚଳ ବୁଦ୍ଧଙ୍କ ଜନ୍ମସ୍ଥାନ ହୋଇଥାନ୍ତା, ତେବେ ୧୨ବର୍ଷ ଅପେକ୍ଷା କରିବା କାରଣ ତ ନଥିଲା । ବୁଦ୍ଧଙ୍କ ଜନ୍ମସ୍ଥାନ କଳିଙ୍ଗ ହେତୁରୁ ସେଠାର ହତ ଦୁର୍ଦ୍ଦଶାଗ୍ରସ୍ତ, ବ୍ୟଙ୍ଗ ଲୋକଙ୍କ ଭିତରକୁ ଅଶୋକ ଆସିବାକୁ ଲଜ୍ଜିତ ହେଲେ । ତେଣୁ ୧୨ ବର୍ଷ ସୁଶାସନରେ ରଖିବା ପରେ ଯାଇ କଳିଙ୍ଗକୁ ଆସିଲେ । ଶିଳାଲିପି ପ୍ରକଟିତ କଲେ ।

୨—ଏଯାଏ ବୁଦ୍ଧ କଳିଙ୍ଗକୁ ଆସିନଥିବା କଥା କୁହାଯାଉଛି । କିନ୍ତୁ କପିଳବାସ୍ତୁକୁ ସେ ୨ଥର ଆସିଥିବା ଅତି ସତ୍ୟ । ତାଙ୍କ ନିଜ ଜ୍ଞାତିମାନଙ୍କ ଦୁର୍ବ୍ୟବହାରରୁ ସେ ଏ ଜାଗା ଆଉ ମାଡ଼ି ନାହାନ୍ତି । ତେଣୁ କପିଳବାସ୍ତୁ ଯେବେ କଳିଙ୍ଗରେ, ନଆସିଲେ ବୋଲି କହିବା କିପରି ? ପୁଣି ବୁଦ୍ଧଙ୍କ ଦନ୍ତ କଳିଙ୍ଗ ସମ୍ରାଟ ପାଇଲେ କେଉଁ କାରଣରୁ, ଏହା ମଧ୍ୟ ଭାବିବାର କଥା ।

୩-ବୁଦ୍ଧଙ୍କ ପାଇଁ ତାଙ୍କ ବାପା ୩ଟା ପ୍ରାସାଦ କରିଥିଲେ, ସେ ରୋଗୀ, ବୃଦ୍ଧ ଆଦି ଦେଖିନଥିଲେ ବୋଲି ସଂସ୍କୃତ ଲଳିତ ବିସ୍ତରରେ କାବ୍ୟାନୁସାରେ ୪ର୍ଥ ଶତାବ୍ଦୀରେ ଯାହା ବର୍ଣ୍ଣିତ ଥିଲା ତାହା ପ୍ରଥମରୁ ପ୍ରଚ୍ଚର ହୋଇ ଯାଇଥିଲା । କିନ୍ତୁ ସମଗ୍ର ପାଲିତ୍ରିପିଟକ ପଢି ମହାତ୍ମା ଗାନ୍ଧୀଙ୍କର ଜଣେ ପ୍ରିୟବନ୍ଧୁ ଗୋଆବାସୀ ଧର୍ମାନନ୍ଦ କୋସମ୍ବୀ ଯେଉଁ ଭଗବାନ ବୁଦ୍ଧ' ବହି ଲେଖିଛନ୍ତି—ସେ ସେଥିରେ କହିଛନ୍ତି ଶୁଦ୍ଧୋଦନ ଜଣେ ଶ୍ରମିକପରି କୃଷି କରୁଥିବା କ୍ଷୁଦ୍ର ଜମିଦାର ଥିଲେ । ବୁଦ୍ଧ କୃଷି ବିଲକୁ ମଧ୍ୟ ଯାଉଥିଲେ । ତେଣୁ ଲଳିତ ବିସ୍ତର ବର୍ଣ୍ଣନା ସବୁ ମିଛ ।

୪-ମହାପଦାନ ସୂତ୍ରରେ ବର୍ଣ୍ଣିତ ଅଛି ଶାକ୍ୟ ଏବଂ କୋଲି ଯେଉଁମାନେ ବୁଦ୍ଧଙ୍କ ନିଜ ଜ୍ଞାତି ଏବଂ ଶ୍ୱଶୁର ଘର, ଏ ଦୁଇ ଗୋଷ୍ଠୀ ଏକ ନଦୀର ଜଳ ସ୍ୱ ସ୍ୱ ବିଲକୁ ନେବା ପେଇଁ ହାଣକାଟ ହେଉଥିଲେ । ଏପରିକି ବାଗ୍‌ବାଣରେ ବ୍ୟଥା ଦେଉଥିଲେ । ବୁଦ୍ଧ ନିଜେ କହିଛନ୍ତି-ସେ ଏ କଳି ତୁଟାଇ ନପାରି ପ୍ରବ୍ରଜ୍ୟା ଗ୍ରହଣ କରିଥିଲେ । (୪ର୍ଥ ଅଧ୍ୟାୟ କୋସମ୍ବୀ)

୫-ପ୍ରବ୍ରଜ୍ୟା ଗ୍ରହଣ କରି ବୁଦ୍ଧଦେବ ମଗଧ ରାଜଧାନୀ ରାଜଗୃହରେ ବୁଲୁଥିବା ବେଳେ ରାଜା ବିମ୍ବିସାର ତାଙ୍କ ପରିଚୟ ପୁଚ୍ଛିଥିଲେ । ସେ କହିଥିଲେ—

ଉଜୁଂ ଜାନପଦୋ ରାଜା ହେମବନ୍ତସ୍ୟ ପସ୍‌ସତୋ
ଧନ ବିରିୟେନ ସପନ୍ନେ ତୋଷଲେସୁ ନିକେତନୋ ।
ପବ୍‌ବଜ୍ଜାସୁତ୍ତ ଗାଥା ୧୮। ସୁତ୍ତନିପତ ।

ଏଠାରୁ ସିଧାସଳଖ ହେମବନ୍ତର ପାଦ ଦେଶରେ ଥିବା ଧନ ଓ ବୀରତ୍ୱଶାଳୀ ତୋଷଳ ଦେଶରେ ମୋ ଘର । ହେମବନ୍ତ ବା ହେମଗିରି ଯେ ଭୁବନେଶ୍ୱର, ଏହା ଅତିପ୍ରସିଦ୍ଧ । "ଉଲ୍ଲସେ ଭୁବନ ଈଶ୍ୱରୀ ହେମଗିରି ବାସିନୀ" ରାଧାନାଥ ଲେଖିଛନ୍ତି । ସ୍ୱର୍ଣ୍ଣାଦ୍ରି ମହୋଦୟର 'ସ୍ୱର୍ଣ୍ଣାଦ୍ରି' ଏହା ହିଁ । ବିଶେଷରେ 'ସିଧାସଳଖ' ମାନଚିତ୍ରରେ ରାଜଗୃହଠାରୁ କପିଳେଶ୍ୱର ବା ତୋଷଳ ହେବ । କେବେ ହିମାଳୟପୃଷ୍ଠ ତରାଇ ଅରଣ୍ୟ ଅଥବା କୋଶଳ ହେଉନାହିଁ । ଅବଶ୍ୟ ପାଠକ ତରାଇ ସପକ୍ଷରେ ଯିବାକୁ କୋଶଳ ଓ ହିମଗିରି ଲେଖାଯାଉଛି ।

୬-ଜାତକ ନିଦାନ କଥାରେ ଅଛି-ବର୍ଷକୁବର୍ଷ ଶୁଦ୍ଧୋଦନ ବପ୍‌ପମଙ୍ଗଳ ଉତ୍ସବ (ବୀଜବପନ) ପାଳନ୍ତି । ରାଜପଥରେ ବିମାନରେ ଦିଅଁ ସବୁ ବିଜେହୁଅନ୍ତି । ମାଳା ଚନ୍ଦନ ଭୂଷଣରେ ରାଜା ଲୋକଙ୍କ ସହିତ ଯାଇ ସୁନା ଲଙ୍ଗଳରେ ଭୂମିଚଷନ୍ତି । ଏବେ ଏ ଉତ୍ସବ ଓଡ଼ିଶାରେ ଅକ୍ଷୟ ତୃତୀୟାଦିନ ଅଛି । ଏପରିକି କପିଳେଶ୍ୱର ମନ୍ଦିରରୁ ଯେଉଁ ରାଜପଥରେ ଠାକୁର ବିଜେହୋଇ ଜମି ଯାଏ ଯାଉଥିଲେ ତା ମଧ୍ୟ ବର୍ତ୍ତମାନ ସୁଦ୍ଧା ରହିଅଛି ।

୭-ଲୁମ୍ବିନୀରେ ଧାନ ଥିଲା ପ୍ରଧାନ ଫସଲ-ଯାହା ଏବେ ଲୋମ୍ବାଇରେ ଅଛି । କିନ୍ତୁ ତରାଇ ଗ୍ରାମ୍ୟ ପରିସରରେ ଆଦୌ ନାହିଁ । ଅତି ଆଶ୍ଚର୍ଯ୍ୟ କଥା ଯେ ଶୁଦ୍ଧୋଦନ ନାମଟିର ଅର୍ଥ ଶୁଦ୍ଧ ଓଦନ ଅର୍ଥାତ୍ ସିଦ୍ଧ ତଣ୍ଡୁଳ ବା ଭାତ ପ୍ରତି ଯାହାର ଶ୍ରଦ୍ଧା-ସେ । ସେପରି ତାଙ୍କ ଭାଇମାନଙ୍କ ନାଁ ଅମିତୋଦନ । ଶୁକ୍ଳୋଦନ, ଘୃତୋଦନ ଏହି ଅନ୍ନ ସ୍ନେହ ଦେଇ ଦିଆଯାଇଥିଲା । ଶୁଦ୍ଧୋଦନଙ୍କ ଏକ ଭାଇଙ୍କ ନାମ ଧୌତୋଦନ । ପାଶ୍ଚାତ୍ୟ ଗବେଷକମାନେ ଏହାର ଧୌତ ଅନ୍ନରେ ପ୍ରିୟ

(ହାଭିଙ୍ଗ୍ ଓ୍ୱାସଡ୍ ରାଇସ୍) ଅର୍ଥାତ୍ ଉକ୍ତ ରାଜପୁତ୍ରଙ୍କର ପଖାଳ ଭାତ ପ୍ରିୟ ଖାଦ୍ୟଥିଲା ବୋଲି ମତ ପ୍ରକାଶ କରିଛନ୍ତି । ଏହା ବିଶେଷ ଭାବରେ ଓଡ଼ିଶାର ଖାଦ୍ୟ ଏବଂ ଶୁଦ୍ଧୋଦନ ରାଜପରିବାର ଖାଣ୍ଟି ଓଡ଼ିଆ ବୋଲି ଏକ ପ୍ରାମାଣିକ ତଥ୍ୟ ।

୮-ବୁଦ୍ଧ ମାତୁଳ କନ୍ୟା ବିବାହ କରିଥିଲେ । ଏହା କେବଳ କଳିଂଗର ପ୍ରଥା । ସମଗ୍ର ଭାରତରେ ଦକ୍ଷିଣାଞ୍ଚଳ ବ୍ୟତୀତ ଏ ପ୍ରଥା କେଉଁଠି ହେଲେ ନାହିଁ । ଏହା ଉତ୍ତର ଭାରତରେ ସ୍ୱପ୍ନ । ପୁନଶ୍ଚ ପାଳିଟ କନ୍ୟା ବିଧି ମଧ୍ୟ ଉତ୍କଳରେ ଅଦ୍ୟାପି ପ୍ରଚଳିତ- ଯାହା ଶାକ୍ୟ ଏବଂ କୋଲ ମାନଙ୍କ ମଧ୍ୟରେ ଥିଲା । (ଦିସ୍ ଦ ସକ୍‌ସେସନ ଅଫ୍ ଦ ଶାକ୍ୟସ୍ ଆଣ୍ଡ କୋଲୟସ୍ ମେକିଂଗ ଇଣ୍ଟର ମ୍ୟାରେଜେସ୍ ଉଇଥ୍ ଓ୍ୱାନ ଆନାଦର କେମ୍ ଡାଉନ୍ ଟୁ କିଂଗ ସିଂହାହୁନ ।) ଶାକ୍ୟ ସିଂହାହୁନଙ୍କ ଭଉଣୀ ଯଶୋଧାରାଙ୍କୁ କୋଲ ବଂଶୀୟ ଅଞ୍ଜନ ବିବାହ କରି ଥିଲେ ଏବଂ ଉକ୍ତ ଅଞ୍ଜନଙ୍କ ଭଉଣୀ କଞ୍ଚନଙ୍କୁ ସିଂହାହୁନ ବିବାହ କରିଥିଲେ । ( ଟମାସଙ୍କ ବୁଦ୍ଧ ପୃ ୨୪ )

୯- ବୁଦ୍ଧଙ୍କ ଗୋତ୍ର ଆଦିତ୍ୟ ବୋଲି ସେ ବିମ୍ବିସାରଙ୍କୁ କହିଥିଲେ ।

ଆଦିତା ନାମ ଗୋତ୍ତେନ ଶାକସ୍ୟା ନାମ ଜାତୟା

ଏ ଗୋତ୍ର ଉତ୍କଳରେ ପରମ୍ପରାଧରି ନରସିଂହପୁର ରାଜା ଓ ସେଠା କ୍ଷତ୍ରିୟ ବଂଶରେ ଓ ଶୁଦ୍ଧ ସମ୍ପ୍ରଦାୟରେ ରହି ଆସିଛି । ଏପରିକି ଶାକ୍ୟ ମାନଙ୍କ ପୁରୋହିତ କୋଣ୍ଡନ୍ୟ ଗୋତ୍ରର ବ୍ରାହ୍ମଣ ଥିବା ଯେ ଲେଖା ଅଛି ଏବେ ମଧ୍ୟ ନରସିଂହପୁରର କ୍ଷତ୍ରିୟ ଓ ରାଜାଙ୍କ ପୁରୋହିତ କୌଣ୍ଡନ୍ୟ ଗୋତ୍ରରେ ଅଛନ୍ତି ।

୧୦-ଛନ୍ଦକ ଯେକି ବୁଦ୍ଧଙ୍କ ଅଶ୍ୱପାଳ, ତା ନାମାନୁସାରେ ଚନ୍ଦକ-ଚନ୍ଦକା ଏବେ ମଧ୍ୟ ଭୁବନେଶ୍ୱର ସନ୍ନିକଟରେ ଅଛି ।

୧୧ ବୁଦ୍ଧଙ୍କ ସମୟର ଅନୋମାନଦୀକୁ ଖ୍ରୀଷ୍ଟ ୨ୟ ଶତକରେ ଟଲେମି ଲେଖିଲେ 'ମନଦ' —ଯାହାକି ମହାନଦୀ । ସେହି ନଦୀ କୂଳରେ କେଶନଗ୍ର ( କଶନ ନଗର ) ଅଦ୍ୟାପି ରହିଛି ।

୧୨-ବୁଦ୍ଧଙ୍କ ଅନଶନ ଭଂଗ ବେଳେ ଉତ୍କଳର ଦୁଇଜଣ ଭୂୟାଁ । ସାଧବ ତପୁସା ଭଲ୍ଲିକ ତାଙ୍କୁ ଅନ୍ନପାନ ଦେଇ ଥିବା ଏବଂ ସଦ୍‌ବାଦ୍ୟରୁ ବୌଧଧର୍ମ ଗ୍ରହଣକରି ଥିବା ଇତିହାସ ପ୍ରସିଧ । ଏହା ବିନୟ ପିଟକରେ ଏବଂ ଜାତକରେ ବର୍ଣ୍ଣିତ ଅଛି । ଏ ଘଟଣାର ତାତ୍ପର୍ଯ୍ୟ ଗୌତମ ବୁଧଙ୍କ ଉତ୍କଳ ସମ୍ପର୍କ ସୂଚିତ କରେ ।

ଏ ସଂପର୍କୀୟ ମୂଳ ରଚନାରେ ଅସଂଖ୍ୟ ପ୍ରମାଣ ଅବଶ୍ୟ ଦିଆଯାଇଛି । ଏହାହିଁ ତାର ସଂକ୍ଷିପ୍ତ ବା ଚୁମ୍ବକ ମାତ୍ର ।

ତରାଇ ଲିପିଟି କାହିଁକି ସୃଷ୍ଟି କରାଗଲା ସେଥିରେ ବହୁ ପ୍ରମାଣ ମଧ୍ୟରୁ ଗୋଟିଏ ହେଲା— ବୌଧଧର୍ମର ପ୍ରାବଲ୍ୟ ବେଳେ କାଳେ ପୁଣ୍ୟପୀଠ ବାରଣାସୀ ଏକାବେଳେ ଧ୍ୱଂସ ହୋଇଯିବ । ସେ ଆଶଙ୍କାରେ ବହୁ ହଜାରଫୁଟ ଉଚ୍ଚଭୂମି ହିମାଳୟର ଅଲମୋଡାରେ ଗୁପ୍ତକାଶୀ ଘୋର ଅରଣ୍ୟ ନିର୍ଜନରେ ସୃଷ୍ଟି ହୋଇଥିଲା । ଏବେ ମଧ୍ୟ ତାହା ସାମାନ୍ୟ କେତୋଟି ଲୋକଙ୍କୁ ଯେଣୁ ଗୁପ୍ତରେ ପ୍ରାୟ ରହିଛି ।

ତଦ୍ରୁପ ବୁଧଙ୍କ ସର୍ବପ୍ରଧାନ ପୀଠ ଜନ୍ମସ୍ଥାନ ଏକାବେଳେ ଲୁପ୍ତ ହେବା ଯୋଗୁଁ ବୌଧ ମନସ୍ୱୀ ଧାର୍ମିକମାନେ ମୂଳସାକ୍ଷ ଅଶୋକଙ୍କ ଲିପିର ଏକ ଅନୁକୃତ ଯେଣୁ ହିମାଳୟର ଗଭୀର ଅରଣ୍ୟରେ ପଶି ସଂଗରେ ନେଇଥିବା ଶିଳ୍ପୀ ମାନଂକ ସାହାଯ୍ୟରେ ବୌଧ ଧର୍ମର ସତ୍ୟ ପ୍ରତିଷ୍ଠାକୁ

ରଖି ଏପରି ଏକ ସ୍ମାରକ ରଖିଥିଲେ । ସେମାନଂକର ନିଶ୍ଚିତ ଆଶାଥିଲା ଯେବେ ମୂଳପୀଠ ପ୍ରକଟିତ ହୁଏ ତ ହୁଏ ନଚେତ୍ ଏହିପୀଠରେନ ବୁଧଂକ ସ୍ମୃତି କାହିଁଭମାନ ହେଲେ ରହି ପାରିବ । ଗୁହ୍ୟାତି-ଗୁହ୍ୟ ଅଗମ୍ୟସ୍ଥାନକୁ ନେଇ ନିଜ ଧର୍ମରି ଣଂକୁ ରଖିବା ଘଟଣା ସବୁଧର୍ମରେ ଦେଖା ଯାଇଛି । ଭଂଗାରୁଣ କଥାଚନ୍ତା କଲେ ଏହାର ତାତ୍ପର୍ଯ୍ୟ ଓ ଉତ୍ତର ସହଜରେ ମିଳି ପାରିବ ।

ଅଶୋକଂକ ଅନ୍ତେ କଳିଂଗ ସ୍ୱାଧୀନ ହୋଇଁ ଯିବାମାତେ ଓ ଦୌରାତ୍ମ୍ୟ ବା ଧର୍ମ ବିପ୍ଳବ ଅତି ସାଂଘାତିକ ଭାବରେ ଘୃଟିଲା । ଅବଶ୍ୟ କେତେକ କାଳି ଯେ ଅନ୍ତରାଳରେ ନବର୍ତ୍ତିଗଲା ତାନୁହେଁ । କିନ୍ତୁ ମୁଖ୍ୟ ପୀଠ ସବୁ ଭ୍ରଷ୍ଟ ହୋଇଗଲା । ବୁଧଂକ କୋଣାକମନ ମୂର୍ତ୍ତି ଯାହା ଏକ ପ୍ରସିଧ ବୌଧ ପୀଠ ଗୃହିନିରେ ପୂଜିତ ହେଉଥିଲା, ତାହାର ସ୍ତୁପମନ୍ଦିରାଦି ଥରକୁଥର ବଦଳିଲା । ଶେଷକୁ ସେ କୋଣାକମନ ସୂର୍ଯ୍ୟଦେବତା ଭାବେ (କୋଣାର୍କ ଦେବ) ପୂଜା ପାଇଲେ । ତାମଧ ଭ୍ରଷ୍ଟ ହେଲା । ମୂର୍ତ୍ତି ଜଗନ୍ନାଥ ମନ୍ଦିରକୁ ଅପସାରିତ ହେଲେ । ଏ ମୂର୍ତ୍ତି ନିଶ୍ଚିତ ବୁଧମୂର୍ତ୍ତି' ବୋଲି ଜଣା ଯାଇଛନ୍ତି । ଏବେ ଇନ୍ଦ୍ର ମନ୍ଦିରରେ ଅଛନ୍ତି ।

ଏସବୁ କାରଣ ରେନ ଏହା ନିଶ୍ଚିତ ସତ୍ୟ ଯେ ଏହି କପିଳେଶ୍ୱର କପିଲାବାସ୍ତୁ । ଏହି ଲେମ୍ବାଇ ନିଶ୍ଚିତ ଲୁମ୍ବିନୀ । ଏହି ମଲ୍ଲଆମାନେ ବୁଧଙ୍କର ଅତି ପ୍ରିୟଜନ ଯେଉଁମାନେ ଦିନେ କୁଶିନଗରର ସାଧାରଣ ପ୍ରଜାଥିଲେ । ଏଇଠି ଅଶୋକଙ୍କ ଯୁଦ୍ଧଭୂମି କିଛି ଦୂରରେ ବିଦ୍ୟମାନ । ଏଇଠି ସ୍ତମ୍ଭ ଅଶୋକ ସ୍ଥାପନ କରିଥିଲେ । ସ୍ତମ୍ଭ ଶିଳା ବିକୃତ ଭିତ୍ତିକାରିତା ଅର୍ଥାତ୍ ରାଜାଜ୍ଞା ଅଙ୍କିତ କରାଇ ଲୁମ୍ବିନୀ ଏଇ ଲେମ୍ବାଇର ଖଜଣା ଅଶୋକ ଛାଡ଼ି କରିଥିଲେ—ଏଇଠି ବୁଦ୍ଧ ଜନ୍ମିଥିଲେ ବୋଲି ।

ହେଲେହେଁ ଏହା ବିଶ୍ୱଜଗତ ମାନିନେବାକୁ ବିପୁଳଅର୍ଥ, ପ୍ରଚାର, ପରିଶ୍ରମ, ଧୈର୍ଯ୍ୟ, ନିଷ୍ଠା ସହଯୋଗ ପ୍ରୟୋଜନ । ବ୍ୟକ୍ତିଗତ ଚେଷ୍ଟାରେ ଏ ସମୁଦ୍ର ପାରିଦେବାକୁ ଉଡ଼ୁପ ମାତ୍ର ମିଳିଛି ।

ଆଜିର ଏ ସମାଗମ ଆଦ୍ୟ ଅଧିବେଶନର ସଭାପତି ମହୋଦୟ ଏ ସମସ୍ୟାଟି ହୃଦୟଙ୍ଗମ କରନ୍ତୁ—ବଡ଼ ଆଶା ଲିହିଥିଲି । ତା ସଫଳ ହେବା ଯୋଗୁଁ ତାଙ୍କୁ ଧନ୍ୟବାଦ ଏବଂ ଅଭିନନ୍ଦନ ଜ୍ଞାପନ କରୁଅଛି । ସେ ବିଚାରିଲେ ଏହି ମହାନ୍ ସମସ୍ୟାଟିରେ ବହୁ ସହଯୋଗ ଦେଇପାରିବେ ଏବଂ ଏହା ବହୁ ଭାବରେ ପ୍ରଚାରିତ କରିପାରିବ । ପୁନଶ୍ଚ ଏସବୁ ସଦୟ ହୃଦୟ କରୁଣାର ଅବତାର ତଥାଗତ ବୁଧଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ ।

ଏହି ସିଧାନ୍ତକୁ ବରେଣ୍ୟ ଶିକ୍ଷାବିଦ୍ ଡକ୍ଟର ପ୍ରାଣକୃଷ୍ଣ ପରିଜା ଶ୍ରବଣ କରି ୨୫-୧-୬୮ ରେ ମତ ଦେଇଛନ୍ତି—

ମୁଁ ଐତିହାସିକ ନହେଲେହେଁ ବୁଦ୍ଧଙ୍କ ଜନ୍ମପରି ଯୁଗ ପ୍ରସାରକ ଘଟଣାର ଐତିହାସିକ ତଥ୍ୟ ନିରୂପଣରେ ସମସ୍ତଙ୍କର ଆଗ୍ରହ ରହିବ—ମୋର ମଧ ଅଛି । କପିଳେଶ୍ୱର ଶିଳାଲିପି ସମ୍ପର୍କୀୟ ଶ୍ରୀ ମହାପାତ୍ରଙ୍କ ବିଶ୍ୱାସଯୋଗ୍ୟ ପ୍ରମାଣଗୁଡ଼ିକରୁ ମୋର ସମ୍ପୂର୍ଣ୍ଣ ବିଶ୍ୱାସ ବୁଧଦେବ ଭୁବନେଶ୍ୱର କପିଳେଶ୍ୱରରେ ଜନ୍ମଗ୍ରହଣକରିଥିଲେ ।

ଐତିହାସିକ ପଣ୍ଡିତ ବିନାୟକ ମିଶ୍ରଙ୍କ ୪-୪-୭୦ ମତ—'ଭୁବନେଶ୍ୱର କପିଳେଶ୍ୱରରୁ ଖ୍ରୀଷ୍ଟପୂର୍ବ ଶତକର ନାଗମୂର୍ତ୍ତିମାନ ଆବିଷ୍କୃତ ହୋଇଛି । ପୁନଶ୍ଚ ଏଠାରୁ ଆବିଷ୍କୃତ ଶିଳାଲିପି ଯୋଗୁଁ ସେ ସ୍ଥାନ ବୁଧଦେବଙ୍କର ଜନ୍ମସ୍ଥାନ ନିଶ୍ଚିତ ଅଟେ ।'

ଐତିହାସିକ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟଙ୍କ ମତ ୨।୪।୭୦

'ଇତିହାସ କାହାର ପୈତୃକ ସଂପତ୍ତି ନୁହେଁ । ପ୍ରମାଣମୂଳକ ଉପାଦାନ ଉପରେ ସବୁକଥା ବିଶ୍ୱାସଯୋଗ୍ୟହୁଏ । ଲୁମ୍ବିନୀ ଲିପିର ଅନୁରୂପ ଲିପି କପିଳେଶ୍ୱର-ଠାରେ ଉପରେ ମିଳିଲା, ତାହାର ଗୁରୁତ୍ୱ ଖୁବ୍ ବେଶୀ ।

ଡ଼କ୍ଟର ନବୀନ କୁମାର ସାହୁଙ୍କ ମତ-[ଲିପି ସମ୍ବନ୍ଧରେ]

' ଏ ଲିପିର ଅକ୍ଷର ଠିକ୍ ଅଶୋକଙ୍କ କାଳର । ଲିପିକାରଙ୍କ ଦସ୍ତଖତ ଏଥିରେ ଖରୋଷ୍ଠୀ ଲିପିରେ ରହିଛି । ଏହା ଜାଲ୍ ଲେଖା କହିବା ସମୀଚୀନ ମନେ-ହୁଏନାହିଁ । କେହି କେହି କହନ୍ତି ବୁଦ୍ଧଦେବଙ୍କ ଜନ୍ମସ୍ଥାନ ଓଡ଼ିଶାର କପିଳେଶ୍ୱର ଗ୍ରାମ ।

ବିଭିନ୍ନ ସେମିନାରରେ [ବାଣୀବିହାର ଓ ରାଧାନାଥଟ୍ରେନିଂ କଲେଜ] ଡ଼କ୍ଟର ମନ୍ମଥନାଥ ଦାସ ମୁଖ୍ୟ ଇତିହାସ ବିଭାଗୀୟ ଅଧ୍ୟାପକ ଉତ୍କଳ ବିଶ୍ୱ-ବିଦ୍ୟାଳୟଙ୍କ ମତ :—

'ଆମେ ଏକ ସାଂଘାତିକ ସମସ୍ୟାରେ ମୁଣ୍ଡ ଭର୍ତ୍ତି କରିବାକୁ ଯାଇଛୁଁ । କାରଣ ଏ ସମସ୍ୟାଟି ବର୍ତ୍ତମାନ ସମଗ୍ର ବିଶ୍ୱର ଏକ ସିଦ୍ଧାନ୍ତ ପ୍ରତି ଆହ୍ୱାନ ସ୍ୱରୂପ ହେବ । ଚକ୍ରଧର ବାବୁଙ୍କ ଏ ପ୍ରମାଣଗୁଡ଼ିକ ଦ୍ୱାରା ପୂର୍ବ ସିଦ୍ଧାନ୍ତ ପ୍ରତି ସନ୍ଦେହ ଆସିବା ସ୍ୱାଭାବିକ । ବିଳମ୍ବ ହେଲେ ମଧ୍ୟ ସତ୍ୟର ଜୟ ହୁଏ । ଆମେ ସଫଳକାମ ହେଉ ବା ନହେଉ ଆମର କର୍ତ୍ତବ୍ୟ ଆମେ କରିଯିବୁ ଏବଂ ପ୍ରମାଣଗୁଡ଼ିକ ବିଶ୍ୱ ଦୃଷ୍ଟିକୁ ନିଶ୍ଚୟ ଆଣିବୁ ।

ପ୍ରକାଶକ ଶ୍ରୀଧର ମହାପାତ୍ର ୪।୪।୭୦ ଉତ୍କଳ ସାହିତ୍ୟସମାଜ ସଭାରେ କହିଛନ୍ତି—ଏହାର ଇଂରାଜୀ ଭାଷାରେ ପ୍ରଚାର ପାଇଁ ବିହିତଧନ ଯାହା ଖର୍ଚ୍ଚ ହେବ ମୁଁ ବହନ କରିବି ।

ଏତଦ୍‌ବ୍ୟତୀତ ଓଡ଼ିଶାର ବହୁବିଜ୍ଞ ବରେଣ୍ୟ ପଣ୍ଡିତ ସାହିତ୍ୟିକ ଗବେଷକ ଅକାତରରେ ସମର୍ଥନ ଦାନକରି ଉତ୍ସାହିତ କରିଛନ୍ତି ।

ଏହି ଆଲୋଚନା ସର୍ବପ୍ରଥମେ ୧୯୭୦ 'ସମାଜ' ବାର୍ଷିକ ସଂଖ୍ୟାରେ 'ବୁଦ୍ଧଙ୍କ ଜାତକଶିଳା' ନାମିତ ପ୍ରବନ୍ଧରେ ଆଲୋକପାତ କରାଯାଇଥିଲା । ଗତ ୪।୪।୭୦ ଶନିବାର ଦିନ ସୁପ୍ରତିଷ୍ଠିତ ଉତ୍କଳ ସାହିତ୍ୟ ସମାଜର କର୍ମକର୍ତ୍ତାଗଣଙ୍କ ଆୟୋଜିତ ସଭା ଯୋଗୁଁ ପ୍ରତି ଦୈନିକରେ ତାହା ନିଃସନ୍ଦେହରେ ପ୍ରକାଶିତ ହେବାରେ ଯେଉଁ ସହାନୁଭୂତି ମିଳିଅଛି, ତେଣୁ କୃତଜ୍ଞତା ଜଣାଉଛି ।

ବୁଦ୍ଧଜ୍ଞାନ ମହନ୍ତଂହିଁ ଆକାଶ ବିପୁଳଂସମଂ
କ୍ଷୟଯେତ୍ କଳ୍ପକୋଟୀନା ନ ଚ ବୁଦ୍ଧ ଗୁଣ କ୍ଷୟଃ ।

**ଚକ୍ରଧର ମହାପାତ୍ର**
ହରିପୁରରୋଡ଼, କଟକ-୧
୩।୫।୭୦ ରବିବାର

ଭୁବନେଶ୍ୱର ପ୍ରେସ, ଭୁବନେଶ୍ୱରମାର୍ଗ, ଭୁବନେଶ୍ୱର-୨




କପିଳେଶ୍ୱରଶିଳାଲିପି

ଦେବାନ ପିୟେନ ପିୟଦସିନ ଲଜିନ ବସଷ ଭିସିତେନ
ଆଗାଚ ମହୀଦ ବୁଧେଜାତେ ସକ୍ୟମୁନୀତି ସିଲା ବଗଡ଼ଭୀଚ
କାଲପିତ ସିଲା ଅଭେ ବ ଉସପାପିତେ ହିଦ ଭଗବଂ
ଜାତେତି ଲୁଂମିନି ଗାମେ ଉବଲିକେ କଟେ ଇଳ
ବୁଥେ ୬୦୦।୪୦ ଅଠ ଷଗିୟେଚ - ୟୂନ୍ଦ୍ରତ୍ନ - (ଚୁନ୍ଦ୍ରୟୁ)

ଦେବତାମାନଙ୍କର ପ୍ରିୟ ପ୍ରିୟଦର୍ଶିରାଜା ବଂଶତ ଅଭିଷେକାନ୍ତେ ଆସି ଏଥିପାଇଁ ପୂଜା କରଥିଲେ—ଏଠାରେ ବୁଦ୍ଧ ଶାକ୍ୟମୁନି ଜନ୍ମିଥିବାରୁ ଶିଳାକୁ ଅଙ୍କନ କଲେ । ଶିଳାସ୍ତମ୍ଭ ଠିଆ କରାଇଲେ । ଏଇଠି ଭଗବାନ ଜାତ ହୋଇଥିଲେ ବୋଲି ଲୁମ୍ବିନୀ ଗ୍ରାମକୁ କରହୀନ କଲେ—ପ୍ରକୃତ ଅଦ୍ଧ ୨୪୦ରେ, ଯାହାକ ପୂର୍ବରୁ ଅଷ୍ଟାଂଶ ନିଆଯାଉଥିଲା । ଚୁନ୍ଦ୍ରୟୁ (ଲିପିକାରର ନାମ) ।